KALLIKOTE ESTATE PRESS.





# ହେମଲତା ।

# HAMOLATAH.



ଶ୍ରୀ ରତ୍ନାକର ଶର୍ମ୍ମା
କର୍ତ୍ତୃକ ପ୍ରଣୀତ ।



ଶ୍ରୀ ନୀଳମଣି ବଦ୍ୟାରତ୍ନ
କର୍ତ୍ତୃକ ମୁଦ୍ରିତ ।
୧୯୦୭

ମୂଲ୍ୟ ଏକ ଅଣା ।

## ଉତ୍ସର୍ଗ ପତ୍ର ।

ଅଖିଳ ସଦ୍ଗୁଣ ନିଧାନ
ଶ୍ରୀଲ ଶ୍ରୀଯୁକ୍ତ ବୀରବର ଶ୍ରୀ ବିକ୍ରମଦେବ ବର୍ମ୍ମା
ମହୋଦୟ ମହାଶୟଚରଣେଷୁ ।
ସବିନୟ ନିବେଦନମିଦଂ ।

ସମ୍ମାନାସ୍ପଦ ମହୋଦୟ, ମହୋଦୟ ଉତ୍କଳର ଦୂରବର୍ତ୍ତୀ ସ୍ଥାନରେ ଏବଂ ଭିନ୍ନଭାଷା ପ୍ରଚଳିତ ଦେଶରେ ବାସ କରି ସୁଦ୍ଧା ଉତ୍କଳ ଭାଷାର ଉନ୍ନତିରେ ନିଯୁକ୍ତ ଥାଇ "ସଙ୍ଗୀତ ରାଧାମାଧବ ନାଟକ" ପ୍ରଣୟନ ଓ ପ୍ରକାଶ କରିତଃ ଉତ୍କଳରେ ସୁଖ୍ୟାତି ଲାଭ କରି ଅଛନ୍ତି । ମହୋଦୟଙ୍କର ଏ ପ୍ରକାର ତାଗଶୀଳତା—ସ୍ୱଭାଷାନୁରାଗ ଦେଖି ଏବଂ ଭବଦୀୟ ନିରହଙ୍କାରିତା, ସ୍ୱଦୋଷଦର୍ଶିତା ପ୍ରଭୃତି ଦେବୋପମ ସଦ୍ଗୁଣ ନିଚୟର ପରିଚୟ ପ୍ରାପ୍ତ ହୋଇ ମହୋଦୟଙ୍କ ପ୍ରତି ମୋହୋର ଅନୁରକ୍ତ ଭକ୍ତିର ଉଦ୍ରେକ ହୋଇଅଛି । ସେହି ଭକ୍ତିର ନିଦର୍ଶନ ସ୍ୱରୂପ ଏହି "ହେମଲତା" କ୍ଷୁଦ୍ରକାବ୍ୟ ଖଣ୍ଡି ମହୋଦୟଙ୍କ କରକମଳରେ ଅର୍ପଣ କଲି । ଗ୍ରହଣାନୁମତି ହେଲେ ଚରିତାର୍ଥ ହେବି । ଇତି ।

କୋଟଣ୍ଡା, ବାମଣ୍ଡା } ବଶମ୍ବଦ
ତା ୩୦।୮।୯୯ } ଶ୍ରୀ ରତ୍ନାକର ଶର୍ମ୍ମା ।

କବିବର ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ଓଡ଼ିଶା ଶିକ୍ଷା ବିଭାଗର ଭୂତପୂର୍ବ ଇନସ୍ପେକ୍ଟର ମହୋଦୟଙ୍କର

## ମନ୍ତବ୍ୟ ।

---

"ହେମଲତା" ବିୟୋଗାନ୍ତ କାବ୍ୟ । ଏହାର ରଚନାରେ କବି ସ୍ଥଳେ ସ୍ଥଳେ ଯେପରି ଶକ୍ତିମତ୍ତା ଏବଂ ଭାବୁକତା ଦେଖାଇ ଅଛନ୍ତି ତାହା ବାସ୍ତବ ପ୍ରଶଂସାର୍ହ ।

ରତ୍ନାକର ବାବୁଙ୍କର ଅନ୍ୟାନ୍ୟ ପଦ୍ୟ ପ୍ରବନ୍ଧ ମୁଁ ସମୟ ସମୟରେ ହିତୈଷିଣୀରେ ଦେଖି ବିଶେଷ ପ୍ରୀତିଲାଭ କରିଥିଲି ଏବଂ ତାହାଙ୍କୁ ଉତ୍କଳର ଉଦୀୟମାନ କବିବୃନ୍ଦର ଅନ୍ତର୍ଭୁକ୍ତ ମଣିଥିଲି । "ହେମଲତା" ପାଠଦ୍ୱାରା ମୋହୋର ସେହି ଅନୁମାନ ଦୃଢ଼ୀଭୂତ ହୋଇ ଅଛି ।

କଟକ
୧୩-୪-୧୭ } ଶ୍ରୀ ରାଧାନାଥ ରାୟ ।

ହେମଲତା

---

ଘନ ବଙ୍ଗଲାଶ୍ରୀ ।

ହେଲା ସନ୍ଧ୍ୟାକାଳ    ନିଜ ନିଜ ନୀଡ଼େ
ଗତିକଲେ ପକ୍ଷିକୁଳି ,
ନିଷ୍ପ୍ରଭ ବଦନେ    ପ୍ରତୀଚୀ ଅଚଳ-
ଚୂଳେ ବସେ କରମାଳୀ ।
କୁଙ୍କୁମିତ ଦେଖି    ବାରୁଣୀ ଗଗନ
ଏମନ୍ତ ହୁଏ ପ୍ରତୀତ,
ରକ୍ତ ରଙ୍ଗାଜୀବ-    ଯୋଗେଶ ହୋଇଛନ୍ତି
ହିଙ୍ଗୁଳେ ଏହା ଚର୍ଚ୍ଚିତ ?
ବାରୁଣୀତରୁଣୀ    ସଜାଇ ପିନ୍ଧନ୍ତି
କିଅବା ରଙ୍ଗ ବସନ,
ତା ମଥା ସିନ୍ଦୂର    ବିନ୍ଦୁ ପ୍ରାୟ, ରବି-
ମଣ୍ଡଳ ଦିଶେ ଶୋଭନ ।

ସରୋବର-ନୀରେ     ଦୁଃଖିତ ଅନ୍ତରେ
ମୁଖ ମୁଦିଲା ପଦ୍ମିନୀ,
ବନ୍ଧୁ ଆଗମନ     ସମ୍ପୃ କରେଣି
ହରଷିତା କୁମୁଦିନୀ ।
ରଥାଙ୍ଗ, ରଥାଙ୍ଗୀ     ଦୁଃଖିତେ ଗମିଲେ
ସରଃ ବିପରୀତ କୂଳେ,
ହଂସଗଳୀ-ଘାଳୀ     ଉଡ଼ି ଚଲେ ଗତ
ସନ୍ନିକଟ ନଗ ଚୂଳେ ।
କୁସୁମ କୁଟ୍ମଳ     ବିକାଶ ଉନ୍ମୁଖ
ହେଲେ ବନେ ଉପବନେ,
କୋଟର ଭିତରୁ     ବାହାରି ପେଚାଙ୍କେ
ଭ୍ରମିଲେ ହରଷ ମନେ ।
କ୍ରମେ କ୍ରମେ ନିଶା     ଅସି ପ୍ରବେଶିଲା
ନଭେ ଉଦେ ତାରା-ବ୍ରାତ,
ଅବନୀ-ମଣ୍ଡଳ     କରି ଧବଳିତ
ଉଦେ ହେଲେ ନିଶାନାଥ ।
ନୁହେ ନିଶାନାଥ     ଧରିବା ପାଇଁକି
ଜଗତ ବାନ୍ଧବ ହରି,
ରଜନୀ ରମଣୀ     ରୌପ୍ୟ ଥାଳୀ ଏକ
କରେ ବିକା ଅଛି ଧରି ।

ଅବା ଶଶି-ବାଳୀ    ମୁକୁତା ମାଳାର
ଏ ଅଟେ ରୌପ୍ୟ-ପଦକ,
ଫଣି ମଣି ଶତ    ଗମ୍ଭିରୁ ବା ଅବା
ଝଲୁଅଛୁ ଝକ ମକ ।
ନୁହଇ ଏମନ୍ତ    ଚନ୍ଦନ ବିନ୍ଦୁକ
ଶୋଭେ ସ୍ତ୍ରୀ-ବାଳୀ ଭାଳେ,
କିବା ମଦନର    ଅଟେ ଶ୍ୱେତ ଛତ୍ର
ଭାବୁକ ଏସନ ଭାଳେ ।
ମନ୍ଦ ସମୀରଣ    ବହେ କ୍ଷଣ କ୍ଷଣ
ତା ଦେଖି ହୁଏ ବିଶ୍ୱାସ,
ଭାବୁକ-ମୋହନୀ    ରଜନୀ-ବାଳୀର
ଛାଡ଼େ କ୍ଷଣିକ ନିଃଶ୍ୱାସ ।
ରତି-ପୁର ଘାଜ    ଗୃହିଣୀ ନିଶୀଥେ
ଭଜନ୍ତି ଅତି ନିଶ୍ଚଳ,
ବିଶ୍ରାମ-ଦାୟିନୀ    ନିଦ୍ରାଦେବୀ କୋଳେ
ସୁପ୍ତ ପ୍ରାଣୀ ସକଳ ।
କଲ୍ଲୋଳିନୀ କଳ-    ସ୍ୱନରେ ଅଦୂରେ
କରେ ଅଜନେ ଗମନ,
କ୍ଷେତ୍ରେ କେଲେ ଶିବା    କଉଶିକ ଚଣ୍ଡ-
ରବେ କମ୍ପିତ ଭୁବନ ।

ଚନ୍ଦ୍ର ଚୂତେ ବସି ଚକୋର, ଚକୋରୀ
କରନ୍ତି ମଧୁର ଗାନ,
ସିନ୍ଧୁ-କନକାଭ ଜ୍ୟୋତ୍ସ୍ନାମୃତ-ଧାର
କ୍ଷଣେ କ୍ଷଣେ କରେ ପାନ ।
ଏକାଳରେ ହେମ- ଲତା, ପୁରେ ବସି
ସ୍ୱଗତ ଏସନ ଭାଳେ,
ନଶାନ୍ତରେ ଘଟିବ ଘଟିବ ଧାତା—
ଲେଖିଅଛି ମୋ କପାଳେ ।
ଏ ଯୋଗରେ 'ବନ୍ଧୁ— ଧର', ଚନ୍ଦ୍ର ମୁଖେ
ପଡ଼ିଲା ମୋର ନୟନ
ସେହି ଦିନୁ ମୋର ମନ ଉଡ଼ିଯାଇ
ଛାଡ଼ିଦେଲା ନିଜ ସଦନ ।
ଏ ମୋହନ ମନ୍ତ୍ର ଅନ୍ତ ତାଙ୍କୁ ଜଣା
ଜାଣିବା ପାରିଲି ନାହିଁ,
ଅଲକ୍ଷିତେ ମୋର ହୃଦୟ-ରତନ
ଅନ୍ୟା ନେଲା ସେ ଚୋରାଇ ।
ଧୂଳ ଖେଳ ଠାରେ ପ୍ରାଣେଶ୍ୱର ପଦେ
ଅଛି ମୁହିଁ ଭାବି କର,
ସକଳ ପ୍ରାଣକୁ ନଗଲେ ଏ ଚିତ୍ତେ
ରହିବ ପ୍ରାଣ ମୋହର ।

ବର୍ଷି ଜଗତ   ଏବେ ମୁହିଁ ଯାଉଛୁ
ସଙ୍କେତ ସ୍ଥାନ ଗହନ,
ସେପୁଣି ଶ୍ୱାପଦେ   ପୂରିତ କେମନ୍ତେ
କରିବ ତହିଁ ଗମନ ।
ପୁଣି ଦଶରଥ   ବୃଥା ଘାତୁଣୀରେ
ଗଣିଣିବ କେବେ ଦୁଃଖ ?
ବିନା ଉଦ୍ୟମରେ   କାହିଁ କେଉଁ ଠାରେ
କାହାକୁ ମିଳଛି ସୁଖ ?
ପ୍ରେମ-ତରବାରି   ଯାବର ସାହସ-
ବର୍ମ୍ମ ଅଛି ଯାହା ଠାରେ,
ପ୍ରିୟ ସହଚରୀ   ପଥ ସଖା ଥାଉ
କାହାକୁ ଭୟ ସଂସାରେ ?
ଏତେ ଭାଲି ହୃଦେ   ରମଣୀ ରତନ
ସଙ୍ଗେ ଘେନ ସହଚରୀ,
ନିଜ ଅନ୍ତଃପୁରୁ   ନିଃଶବ୍ଦେ କାହାର
ହେଲା ପନ୍ଥି ବମ୍ପାଂଥରୀ ।
ଯେଉଁ ଶ୍ରୀଚୁ ଦେଖି   ସୁଯୋଗ୍ୟ ବଲ୍ଲୋକି
ଉଦ୍ଧେ ହୁଅଇ କମ୍ପନ,
ଧନ୍ୟ ପ୍ରେମ ମନ୍ତ୍ର   କାଳନ ଚଳନ ସେ
ନାହିଁ ତାହା ଗଣନା ।

ଯେଉଁ ସୁକୁମାରୀ ସୁକୋମଳ ପୁଷ୍ପ-
ପରଶେ ଲଭଇ କ୍ଳେଶ,
ଆଜ କଣ୍ଟକିତ ପଥେ ଗମିବାକୁ
ନ ମଣେ ସେ ଦୁଃଖ ଲେଶ !!
ହୃଦୟ-ବଲ୍ଲଭ ହମ୍ବୀର ତାର
କେଇନ୍ତି ମନ ଚୋରଇ,
ପ୍ରୀତିକି ଅର୍ପିଛି ସ୍ୱଜନେ ପରଣ
ଆନକଥା ମନେ ନାହିଁ ।
ପ୍ରେମର ବଳରେ ହୋଇ ସାହସିନୀ
ସଙ୍କେତ ସ୍ଥାନେ ପ୍ରବେଶ,
ମନରେ ଅକୁଳ ହେଲା ମୀନକେନ୍ଦ୍ରୀ
ନଦେଖି ତା ହୃଦୟେଶ ।
ଅଶୋକ-ମୂଳରେ ସଖି-ସଙ୍ଗେ ବସି
ରହିଲା କାନ୍ତକୁ ଚାହିଁ,
ହୃଦୟ-ଉଦ୍ବେଗ ତେତେ ବଢୁ ଅଛି
ଯେତେ ରଜନୀ ଯାଏ ପାହି ।
ଚାହିଁ ଚାହିଁ ନିଶି ହୋଇଗଲା ଶେଷ
ପ୍ରବେଶ ଉଷା ସମୟ,
ପର୍ବତ-କନ୍ଦରେ ତମଃ, କଉଶିକ
ଲଭିଲେ ବ୍ୟଗ୍ରେ ଆଶ୍ରୟ ।

ବନ୍ୟ ତାମ୍ରଚୂଡ଼　　　　ବଳୀଭୂକ ଚୟ
　　କଲେ ଆନନ୍ଦେ ନାଃସ୍ୱନ,
ଲୁମ୍ବାନ୍ତୁଥ, ଚଷା —　　ପୁଅ, ଖଞ୍ଜନାଟ
　　ରବେ ମୁଖରିତ ବନ ।
ହୋଇଲେ ଅଦୃଶ୍ୟ　　　　ତାରକା ନିକର
　　ହେଲେ ଚନ୍ଦ୍ର ହୀନପ୍ରଭ,
ପ୍ରସାରିତ ରଙ୍ଗ-　　　　ବସନ ପରସ୍ପ
　　ବହିସିଲ୍ଲ ପ୍ରାଚୀନଭ ।
ନାନା ଜାତି ଫୁଲ　　　　ହୋଇଣ ଉତ୍‌ଫୁଲ୍ଲ
　　ବିତରିଲେ ମୃଦୁ ଗନ୍ଧ,
ଗୁଣୁ ଗୁଣୁ ସ୍ୱନେ　　　　ବେଢି ଭୃଙ୍ଗ-ଚୟ
　　ପାନକଲେ ମକରନ୍ଦ ।
ପୂରୁବ ଗଗନେ　　　　ଲୋହିତ ବରଣେ
　　ହେଲେ ତପନ ଉଦିତ,
ନୂତନ ତପନ　　　　ଅବା ହୋଇଲାବ
　　ସ୍ୱର୍ଣ୍ଣଧାରେ ବିକଶିତ ?
ସୁନରୀ ଏକାଳ　　　　ବିନୋଦକ, ନୈରାଶ୍ୟ
　　ବେଷ୍ଟ-ମୁଣ୍ଡେ ବାହୁଡ଼ିଲା,
କିଛି ଦୂର ଯାଇଁ　　　　ଅଦୂରେ ପୁରୂଷେ-
　　ଧରା ଶାୟିତ ଦେଖିଲା ।

ବଦନ ଚନ୍ଦ୍ରମା ଲଭୁଛି କାଳିମା
ଗ୍ରାସି ଅଛି ଦୁଃଖରାହୁ,
ହୋଇଣ ଅବଶ ଧରା-ନିପତିତ
ଆଜାନୁଲମ୍ବିତ ବାହୁ ।
ଧୂଳି ଧୂସରିତ ନବନୀରୁ ବଳି
ସୁକୋମଳ ଅବୟବ,
କରଧୃତ ଅସି ପଡ଼ିଅଛି ଖସି
ଅଙ୍ଗ ହୋଇଛି ବିବର୍ଣ୍ଣ ।
ସନ୍ନିଧିକି ଯାଇ ନିରେଖି ଚିହ୍ନିଣ
ଦେଖିଲା ସେ ଅଚମ୍ଭିତ
ଯା ପଦରେ ବନ୍ଧା ହୋଇଛି ସେ ଯୁବା
ଧରାରେ ଅଛି ଶାୟିତ ।
କାନ୍ଦି କହେ "ନାଥ କୋମଳ ଶ୍ରୀଅଙ୍ଗ
କପାଇଁ ନାହୁଁଛ ମଣି ।
ମଳିନ ହେଉଛି ଜୀବନ, ସଂଶୟ-
ଫେଡ଼ି ତଥ୍ୟକଥା କହି ।"
ନୟନ ଫିଟାଇ ଦେଖିଲା ଯୁବକ
ଅଦୂରେ ଏକ ରୂପସୀ,
କଷିତ-କନକ ପ୍ରାୟ ଅଙ୍ଗ ଜ୍ୟୋତି
ଅବତୀର୍ଣ୍ଣ କିବା ଶଶୀ ?

ଅଥବା କ୍ଷୀରାବ୍ଧି—          ତନୟା ରମା ବ
ମର୍ତ୍ତ୍ୟଲୋକେ ବିରାଜିତ,
ହିମାଦ୍ରି-ନନ୍ଦନୀ          କିମ୍ବା ଗୌରମୂର୍ତ୍ତିରେ
ହେଲେ ପୁଣି ଆବିର୍ଭୂତ ।
ଖଞ୍ଜନ-ଗଞ୍ଜନ          ଯୁଗଳ ନୟନ
ମାରଧନୁ ପ୍ରାୟ ଭ୍ରୂ,
ଶଶଧର ପ୍ରାୟ          ବଦନ ମନୋହର
ବାମା ଶିରୋମଣି-ଉରୁ ।
କଳହଂସ, ଗଜ—          ଗଞ୍ଜ ଗମନୀର
କଣ୍ଠ ଜିଣିଅଛି କମ୍ବୁ,
କଟି ସଙ୍ଗେ ତୁଲ୍ୟ          ହେବାକୁ ଡମ୍ବରୁ
ଅଭ୍ୟସ୍ତ କରନ୍ତି ଶମ୍ଭୁ ।
ଦନ୍ତେ ଅବୃତ          ହୋଇଛନ୍ତି କେତକୀ
ଲଭିବାରୁ ପରାଜୟ,
ଶୋଭଣୀ-ଅଧର          ଶୋଭାପାଏ ଯେହ୍ନେ
ପକ୍ୱବିମ୍ବ କଣ୍ଟଳୟ ।
କଳନ୍ଦ ରଚୟ୍ତା          ଲହର-ପରାୟ
ଶୋଭଇ ଶୁଭ୍ରଅଳକ,
ହେମାଙ୍ଗିନୀ ବେନ—          କର୍ଣ୍ଣେ ବିଶୋଭନ୍ତି
ହେମର କୁଣ୍ଡୁ ତାଙ୍କ ।

ଦରହାସିନୀର ଦନ୍ତଶ୍ରେଣୀ ଶୋଭେ
ଯେସନ ସ୍ୱଚ୍ଛ ହୀରକ,
ଲାବଣ୍ୟ—ଦର୍ପଣ ପରାସ୍ତ କରଇ
ବାମା-କପୋଳ ଫଳକ ।
ଚମ୍ପା ଅଙ୍ଗୁଳିରେ ଶୋଭେ ରତ୍ନମୁଦି
ଯେଉଁ କରେ ଚନ୍ଦ୍ର ଚୁଡ଼ି,
ଭୁଜଙ୍ଗସଙ୍ଗେ ତୁଲ୍ୟ ନୋହଣ ମୃଣାଳ
ସଲିଳେ ରହୁଛି ବୁଡ଼ି ।
କରେ ବାଜୁ ବନ୍ଧ କାକେ ସୋଥ, ଗୁଣା
ଦିଶଇ କେଡେ ସୁନ୍ଦର,
କମଳ-କଳିକା ପରାସ୍ତ କରଇ
ଉରଜ—କଳ ଯୁଗଳ ।
ପଦ୍ମେ ଭୃଙ୍ଗଖେଳା ପରାସ୍ତ ଦିଶଇ
ତୋଳା ବେନି ମନୋରମ,
ଲଜ୍ଜା ବଶେ ଗର୍ଭେ ଲୁଚିଛି ବ ଅଛି
ନୋହଣ ଧମ୍ମିଲ୍ଲ ସମ ।
କଳକଣ୍ଠ-କଣ୍ଠୀ କଣ୍ଠେ ମୋତି-ମାଳା
ପୁଣି ଶୋଭେ ଗ୍ରୀପଶଳୀ,
ଯିନ୍ଥଛି ସଜାଡ଼ି ରମଣୀ-ରତନ
ରତ୍ନ-ଶାଢ଼ୀ ନାଲାମ୍ବରୀ ।

ନିରେଖି ଗୃହାଙ୍ଗଣ        ନିଜ ପ୍ରାଣେଶ୍ୱରୀ
ଚିହ୍ନି ଖେଦେ ବସିଥିଲି,
ନେତ୍ର ମୁଦି ବାଳ        କହେ କ୍ଷୀଣସ୍ୱରେ
"ପ୍ରବେଶ ମୃତ୍ୟୁ ମୋହର ।"
"କପାଳରେ ସତ୍ୟ        ଯାହା ଲେଖାଥାଏ
ନୁହଇ ତାହା ଖଣ୍ଡନ,
ନୋହିଲେ କି ଶମ        ଗ୍ରହ ଫେରେ ପଳା-
ହେବା ଛଡ଼ି ଯାନ୍ତେ ବନ ।
ଏ ଜୀବନେ ଆଉ        ତୋ ରୂପ ଦେଖିବା
ଆଶା ଠାରୁ ଗଲି ସରି,
ପ୍ରାଣାନ୍ତ-ସମୟେ        ଭାଗ୍ୟ ଫଳେ ଆଜି
ଦେଖିଲି ତୋତେ ସୁନ୍ଦରୀ ।
ନିମିଷେ ତୋ ପାଶୁ        ହେଲେଁ ଅନ୍ତର
ଯୁଗ ସମ ମଣୁ ଥାଇଁ,
ଦାରୁଣ ଦହବ        କରୁଛି ଅନ୍ତର
ଆଜ ଚାରି ଦିନ ପାଇଁ ।
ମୋହେବା ଛାର ପାଇଁ        ମନରେ ବାନ୍ଧବ
କଷ୍ଟବୁ ନ ହିଁ ଭାବନା,
ଏ ମାୟା ସଂସାରେ        ସକଳ ଅନିତ୍ୟ
ଅଟଇ ଚନ୍ଦ୍ର-ବଦନା ।

ସଲିଳ ସ୍ଫୋଟକ ପରାୟେ ନଶ୍ୱର
ଅଟେ ମାନବ ଜୀବନ,
ବିଧାତା-ବିଧାନ ଭବେ ଜନମିଲେ
ନିଶ୍ଚୟ ଘଟେ ମରଣ ।
ଜୀବନ-ବିହଗ ଶରୀର—ପିଞ୍ଜରେ
ଚିର ସ୍ଥାୟୀ ନୁହେ ଧନ,
କାଳ-ବାଜପକ୍ଷୀ ଟୁଣ୍ଡ ଝାମ୍ପମାରି
ଅକାଳେ କରେ ହରଣ ।
ମୋହେ ଲାଗି ଅରୁ ବୃଥା ସନ୍ତାପିଲି
କୋହିନୁ ଲାବଣ୍ୟ-ନିଧି,
ଯାହାର ଅଦୃଷ୍ଟେ ଯାହା ଘଟିବ ତା
ଆଗୁ ଲେଖି ଥାଏ ବିଧି" ।
ସେଠୁଁ ବୁଝେ ମୋର ଏଦଶା ଘଟିଲା
କହୁଛି ଶୁଣରେ ସନ୍ଧୁ,
ତୋ ଦର୍ଶନ ଆଶେ ଥାଏଁ, ଏହି ଠାବେ
ମୋ ପଦେ ଦଂଶିଲା ଅହି ।
ଦଂଶନ ମାତ୍ରକେ ସର୍ବ ଅଙ୍ଗେ ବିଷ
ବାଇଲା, ପଡ଼ିଲି ଢଳେ,
ତୋ ଦର୍ଶନ ଯାଏ ଥିଲା ଏ ଜୀବନ
କେଉଁ ପୂର୍ବ ପୁଣ୍ୟ ଫଳେ ।

ଅସନ୍ନ ମରଣ          ହେଲାଣିରେ ଧନ
କପାଳରେଁ ଘାତ୍ କହୁ,
ହେଉଛି ମେଲାଣି          ଥିବିଟୋ ମନରେ
ଏତେକ ମାଗୁଛି ସହୁ ।”
ଏତେ କହୁ ଯୁବା          ମୁଦିଲା ନୟନ
ପିଣ୍ଡ ପ୍ରାଣ ଛାଡ଼ି ଗଲା,
ନୀରଦରେ ଯେହ୍ନେ          ନିମିଷ ମାତ୍ରକେ
ଅଦୃଶ୍ୟ ହୁଏ ଚପଳା ।
ହେମଲତା ଦୁଃଖ          ଏକାଳେ ଯେସନ
କହିବାକୁ କେ ଭାଜନ,
ହୃଦେ ମାରି ହାତ          ଦୀର୍ଘ ସ୍ୱରେ କାନ୍ଦି
ବିକଳେ ଘମାରଡ଼ନ ।
“ଅହା ପ୍ରାଣେଶ୍ୱର          କଦୋଷରେ ମୋତେ
ଶୃଙ୍ଖଳ ଏଡ଼ାକର,
କେମନ୍ତେ ବଞ୍ଚିବ          ଭୁମିବନା ମର୍ତ୍ତ୍ୟ—
କାରାଗାରେ ଦେହ ଧର ।
କହୁଥିଲ ନାଥ          ତକୁ ଷ୍ଟ୍ୱାପର
ତୋତେ ନଛାଡିବ କ୍ଷଣେ,
ତାହା ଅନାଜଭି          କେଉଁ ପଥେ ଗଲଁ
ମୁଁ ନନେଲ ଶାହଣେ ?

କାହା ଅଗେ ବସି ମନକଥା ମୋର
ଜଣାଇବି ମୁଁ ହରଲେ,
ଉପବନୁ କେହ୍ନ ନାନାପୁଷ୍ପ ଘେଣି
ବାନ୍ଧି ଦେବ ମୋ ଅଞ୍ଚଳେ ।
କେ ଲୋତକ ପୋଛି- ଦେବ, ମନୋଦୁଃଖେ
କଲେ ମୁଁ ନାଥ ରୋଦନ,
ନାନା ଗଳ୍ପ କଥା କହ୍ନ ହୃଦ ବ୍ୟଥା
କରିବ କେହ୍ନ ଖଣ୍ଡନ ।
ଅବଧାନ ରୂପେ ଗୀତ ଗୁଅଇବ
କେ ଅଉ ନିର୍ଜନେ ବସି,
ନାନାଦି ବିଷୟ କଥାକେ କହିବ
ଆନନ୍ଦରେ ହସି ହସି ।
ରଜନୀ, ଦିବସ କେ ଅଉ ଜାଗିଣ
ବସି ରୋଗ-ଶର୍ଯ୍ୟା ପାଶେ,
ପୀଡ଼ା କାଲେ ମୋର ଔଷଧ ସେବନ-
କରାଇବ ମଧୁ ଭାଷେ ।
ମାନେ ମୁଁ ବସିଲେ କେତାହା ନାଶିବ
ବିବିଧ ଗଳ୍ପ ବଚନେ,
ବିବିଧ ଶାସ୍ତ୍ରର ଉପଦେଶ କେହ୍ନ
ଶୁଣାଇବ ବେ ବଚନେ ।

ବଗିଚ୍ଚ ବାଡୀରେ    କରିବ ଭ୍ରମଣ
ଯାଉ କାହା କର ଧର,
ସବୁ ସୁଖ ମୋର    ଯାହେ ପ୍ରାଣେଶ୍ୱର
ଆଜ ଠାରୁ ଗଲା ସବୁ ।
ଦାରୁଣ ଦଇବ !    କି ଦୋଷରେ ହର
ନେଲୁ ମୋ ଜୀବ-ଜୀବନ,
ଛୁଡ ଯିବେ ବୋଲି    ନ ଥିବ ମୋ ପୋଡା
କପାଳେ ଥିଲା ଲିଖନ ।
ନୟନ-ପ୍ରତିମା    ଖୋଲି ନେଲୁ ମୋର
ଚନ୍ଦନ ବନେ ବସାଇ
ବଣିକ-ବୋଇତ    ହରି ନେଇ ଦେଲୁ
ଅଗାଧ ଜଳେ ଭସାଇ ।
ପୂର୍ବ ଜନ୍ମେ ମୁହିଁ    କି ପାପ କରିଛି
କି ଦଣ୍ଡ ଦେଲୁ ଦଇବ ?
ବୃକ୍ଷରେ ଚଢାଇ    ମୂଳ କାଟି ଦେଲୁ
ଏହାକି ଦେବ ସମ୍ଭବ ?
ମାନସ-କୁମୁଦ-    ବନ୍ଧୁ, ଧୂର୍ତ୍ତିରନୁ
ହରାଇ ପ୍ରାଣ ବଞ୍ଚିବ ?
ଦୁର୍ଗତି-ତମିର    କାନ୍ତ-ତମୋହର
କାହାକେ ମୋର ହଇବ ?
(ତ)

କାନ୍ତ ଅଙ୍କଲାର ଗଳା-ରତ୍ନମାଳୀ
କାନ୍ତ ଜୀବର ଜୀବନ,
କାନ୍ତ ବନା ପିଣ୍ଡେ ପରାଣ ରଖିବା-
ଅପେକ୍ଷା ଶ୍ରେୟଃ ମରଣ ।
ଏ ଦାରୁଣ ଦୁଃଖ ଘଟିଲେ କଠିଣ-
ପାଷାଣ ଯାନ୍ତା ତରଳ ,
ଏବେ ଦୁଃଖେ ପ୍ରାଣ ନଯାଇ ରହୁଛି
କୁଳଶ୍ଚୁ ଗଢ଼ାଇ ବଳ ?
ଏ ଦାରୁଣ ଦୃଶ୍ୟ ଦେଖିବାକୁ ପୁଣ-
ଯାଏ ଜୀବଥିବ ରହି ?,
କି ବୁଦ୍ଧି କରିବ କେମନ୍ତେ ସହିବ
ହୃଦ ମୋ ହେଉଛି ଦହି ।
ପ୍ରାଣେଶ ହରାଇ କେଉଁ ସୁଖାଶାରେ
ରଖିବ ଏ ଛାର ପ୍ରାଣ ।
ବକ୍ଷେ ଘାତ କରି ହେବି ସହି ଜାଣ
ଭୂପତିତ ଅସି ପୁଣ ।”*
ହେମଲତା-ବାଣୀ ଶୁଣି ସଖୀ କହେ
ଶୁଣ ପୁଣ ଗୋ ହେମ-ଗୋରି ,
ଗତ କଥାରେ ଗୋ କିପାଁ ବୃଥା ଚିନ୍ତା ?

* ବିମ୍ବାଧରର କରସ୍ଥ‌ଳିତ ଅସି ।

ପକାଅ ତାହା ପାଶୋର ।
ପଦ୍ମପତ୍ର ନୀର ପରପ୍ରି ଅସ୍ଥିର
ଅଟଇ ମାୟା ସଂସାର ,
ମାତା, ପିତା, ଭ୍ରାତା ପରିଜନ ଆଦ
ନୁହନ୍ତି କେହି କାହାର ।
ଯାହାକୁ ବୋଲୁଛୁ ଆପଣାର ବୋଲି
ସେହି ତ ନୁହଇ ତୋର ,
ଏରୂପେ ସକଳେ କାଳ ଘେନି ଯାଏ
ଛିଣ୍ଡାଇଣ ମାୟା ଡୋର ।
ଶରୀର ମଧ୍ୟରେ ମାନବ-ଜୀବନ
ପ୍ରଦୀପ-ଶିଖା-ସମାନ ,
କାଳ—ଝଞ୍ଜାନିଳେ ଅକାଳେ ସେ ଶିଖା
ହୁଅଇ ସହ ନିର୍ବାଣ ।
ଯେତେ ଶୋକ କଲେ ହରାଇଲା ନିଧି
ଆଉକୁ ପାଇବୁ କାହିଁ ?
ପିଞ୍ଜରାରୁ ଶୁକ ଉଡିଗଲେ ସହି
ଲେଉଟି ଆସଇ ନାହିଁ ।
ବଧି ହସ ନିଧି କଲାତ ଅବଧି
କ ହାକୁ କହିବା ଆଉ ,
ବୃଥା ଝୁଲୁଣିରେ ନୁହଁଗୋ ଆତୁର

ଗଲା କଥାମାନ ଯାଉ ।
ଯୁବାରହ ସହ ମିଶାଦେବେ ବଳ
ଲଭିବୁ ପରମ ସୁଖ,
ବୃଥା ଭାଳୁଣିରେ ନାହିଁ ଗୋ କାରଣ
ମନୁଭୋଗ କେତେ ଦୁଃଖ ।”
ଶୁଣି ସଖି-ବାଣୀ ସଜଳ ନୟନେ
କହେ ତାକୁ ହେମଲତା,
ଏ ଅମାତ କଥା କହି ବଧୁ ସହ
ଅଧିକ ବଢାଉ ବ୍ୟଥା ।
ସେସିକା ମୋ ପତ ଯାହାଙ୍କ ପଦରେ
ବଳ ଅଛି ଏ ଜୀବନ,
ଅନ୍ୟ ପୁରୁଷରେ ମତ ବଳାଇବା
ଅଟେ ଅସତୀ ଲକ୍ଷଣ ।
ସହିରେ,
ଏହା ହେବ ବୋଲି ଜାଣି ମୁଁ ନଥିଲି
ଥାଉ କଲି ଏତେ ସବୁ,
ସହୃଦଗ ମୋତେ ଅକାର ଦଣ୍ଡ
ବଢ଼ିବ ଦନ କପରୁ ?
ଦର୍ପ କାର୍ଯ୍ୟ ଘଉ ଏ ପୋଡା ପଗଣେ
ଏହା ଥିଲା ମୋ କପାଳେ,

ଯାକୁ କରଥିଲି  ଗଳା-ମାଳ, ଗଳା-
କାଟି ଦେଲ ସେ ଅକାଲେ ।
ବିଚ୍ଛେଦ-ଅନଳେ  ଦଗ୍ଧ ହୁଏ ଦେହ
କହିଲେ କିଏ ଶୁଣିବ ?
କାହାକୁ କହିବି  ମୋ ହୃଦ-ବେଦନା
ମୋ ମନ କିଏ ଜାଣିବ ?
ଯେ ମୋର ଜୀବନ-  ଧନ ରେ ସଙ୍ଗାତ
ତାକୁ ଧାତା ନେଲା ହରି,
ଘଣ୍ଟାରୁ ସଞ୍ଚିତ  ପୀୟୂଷ ହରଣ
ଦେଲ ହଳାହଳ ଭରି !!
ମୋ ନୟନ ପଥେ  ଝୁଲୁଛି ନିରନ୍ତେ
ସେ ଗୁରୁ ଚନ୍ଦ୍ର ବଦନ,
ଘାଣ୍ଟି ହେଉଅଛି  ଅବିରତେ ମନ
ଯଲଲାବର୍ତ୍ତ ଯେସନ ।
କହିଲେ କି ଶେଷ  ହେବ ଯେତେ କଥା
ଅଛି ତାଙ୍କର ବିଷୟି,
ଖେଳୁଥିଲୁ ପଣା  ବାଲହାଲେ ଦିନେ
ନାଥ-ସଙ୍ଗତରେ ବସି ।
ତାହାଙ୍କ ସଙ୍ଗରେ  ପ୍ରିୟସହ ତହିଁ
ହେଲରେ ପଣ ମୋହର,

ପ୍ରାଣନାଥ ମୋର ଯେବେ ଜଣିବେଲେ
ମୁଁ ହେବ ଦାସୀ ତାଙ୍କର ।
ବାପର ବଧାନ କେ କରବ ଅନ
ଦଉବେ ମୁହିଁ ହାରଲ ,
ସେହି ବନୁ ସତ୍ତ୍ୱ ଦାସୀ ହୋଇ ଦେହ
ତାଙ୍କ ପଦେ ସମର୍ପିଲ ।
ବାଲକାଳେ ହନେ ବାଲକ, ବାଳକା
ଦାଣ୍ଡରେ ମିଳ ଉଲ୍ଲୁକେ ,
ଧୂଳଘର କର ରଡ ହେଲୁଁ ସହି
ସବେ ଖେଳ, କଉତୁକେ ।
ଏକ ଶିଶୁ ତହିଁ ହେଲେ କନ୍ୟାକର୍ତ୍ତା
ବରକର୍ତ୍ତା ହେଲେ ଏକ ,
ହେତେ ଶିଶୁ ବନ୍ଧୁ- ବାନ୍ଧବେ ବଉତ,
ଦର୍ଶକ ହେଲେ ଅନେକ ।
କନ୍ୟାରୂପେ ତହିଁ କଲେ ମୋତେ ଧାର୍ଯ୍ୟ
ବର ହେଲେ ପ୍ରାଣେଶ୍ୱର ,
ଧୂଳ ବେଦ ମଧ୍ୟେ ବସାଇ କହିଲେ
ଏହି ଅଟେ ତୋର ବର ”
ପିତ୍ରାଦେଶ ପାଇ ବର ମାଲ୍ୟ ଦେଲ
ନେଇ ମୁଁ ପ୍ରାଣେଶ ଗଲେ ,

ପୁରୋଧା ହୋଇଣ    ଏକ ଶିଶୁ ତହିଁ
ବିବାହ ଆରମ୍ଭ କଲେ ।
ନାଥ ସଙ୍ଗେ ମୋର    ଦେଇ ହସ୍ତ ଗ୍ରନ୍ଥି
ବିଭା କଲେ ସମାପନ ,
ଶିଶୁ ବୃନ୍ଦ ମିଳି    ଦେଲେ ହୁଳହୁଳି
ହୋଇ ଅତି ହୃଷ୍ଟ ମନ ।
"ଏ ତୋହର ପତ୍ନୀ"    ବୋଲି ନାଥ-କରେ
କଲେ ମୋତେ ସମର୍ପଣ ,
ସେହିଦିନୁ ସହି    ପ୍ରାଣେଶ୍ୱର ରୂପେ
କରୁଛି ତାଙ୍କୁ ଗ୍ରହଣ ।
ସହିରେ ,—
ପୁର ଉଦ୍ୟାନକୁ    ଦିନେ ବୁଲିବାକୁ
ଏକାକିନୀ ଯାଇ ଥିଲି ,
ବୁଲି ବୁଲି ସହି    ଝୁଣ୍ଟି ହୋଇ ତହିଁ-
ତଳେ କଣ୍ଟିଡ ପଡ଼ିଲି ।
ହେଲି ହତଜ୍ଞାନ    ଭାଗ୍ୟେ ପ୍ରାଣେଶ୍ୱର
ଉଦ୍ୟାନକୁ ଥିଲେ ଯାଇ ,
ଅଞ୍ଚଳେ ବିଞ୍ଚଣ    ନାନା ଉପାୟରେ
ମୋ ପ୍ରାଣ ଥିଲେ ବଞ୍ଚାଇ ।
ସହିରେ ,—

ଦିନେ ପିତା, ପ୍ରାଣ- ନାଥଙ୍କୁ ଡକାଇ
କହିଲେ ମଧୁ ବଚନେ ,
ମୃଗୟା ନିମିତ୍ତ ତାଙ୍କ ଗହଣରେ
ଯିବାକୁ ଗହନ ବନେ ।
ଏ ବାରତା ପାଇ ମନରେ ସହରେ
ବହୁ ଉଷତ ହୋଇଣ ,
କହିଲି "ମୋପାଇଁ— ଆଣି ଦେବ ଏକ-
ଜୀବନ୍ତ ବାଲ ହରିଣ" ।
ହରଷ ଚିତ୍ତରେ କରି ଅଙ୍ଗୀକାର
ଭାଷିଣ ଚାଟୁ ବଚନ ,
ପ୍ରାଣେଶ୍ୱର ମୋର ଏ ଅନ୍ତେ ସଜନ
ମୋ ପାଇଁ କଲେ ଗମନ ।
ଅନୁଚର ବୃନ୍ଦ ଘେନି ସଙ୍ଗତରେ
ପିତା ସଙ୍ଗେ ପ୍ରାଣପତି ,
ମୃଗ ବଧ ଲାଗି ଗହନ କାନନ
ଅଭିମୁଖେ କଲେ ଗତି ।
କିଛି କାଳ ଅନ୍ତେ ମୃଗ ନପାଇଣ
ହୋଇ ପ୍ରତ୍ୟାଗତ କାନ୍ତ ,
ମୃଗ ନ ଆଣିବା ତ୍ରୁଟି କ୍ଷମିବାକୁ
କହିଲେ ଧରି ମୋ ହାତ ।

ମିଥ୍ୟା ମାନ କରୁଁ    କହିଲେ ପ୍ରାଣେଶ
ଯେତେ ବିନୟ ଭାରତୀ ,
କଉତର ଧାର    ପ୍ରାୟ, ମନେ ପଡ଼
ହୃଦୟ ଦଏ କଉତି ।
ସଜନିରେ ,
ଭାଦ୍ରବ ମାସର    ଶେଷ ରବି ବାର
ପୂଜାଅନ୍ତେ ଅୟୋଜନ —
କଲେ, 'ଖୁଦକୁଣୀ'    ଦେବୀଙ୍କି ଜଳରେ
କରିବାକୁ ବିସର୍ଜନ ।
ବେଶଭୂଷା ହୋଇ    ବାହାରିଲେ ସର୍ବେ
ହର୍ଷେ ହେଲେ ଟୁଲଟୁଲ ,
ମୃଦଙ୍ଗ କଂସାଳ    ବାଦ୍ୟନାଦେ, ଉନ୍ନ-
ସ୍ୱର ଗାନ୍ଧଗୋ ଉଛୁଳ ।
ସର୍ବେ ନଦୀଘାଟେ    ହେଲେ ଉପସ୍ଥିତ
ଦେବୀଙ୍କି ଘେନି ସଙ୍ଗତେ,
ଦେବୀଙ୍କି ଭସିବା —    ଗର୍ବେ ଭସାଇବା
ପାଇଁ ମୁଁ ଗଲି ଉଷତେ ।
କପାଳ ଲେଖନ    କେ କରିବ ଆନ
ପଦ ମୋର ଗଲା ଖସି ,
ଅଗାଧ ଜଳରେ    ଯାଇ ମୁଁ ପଡ଼ିଲି

ନଦୀ ଗର୍ଭେ ଗଲା ପଶି ।
ପ୍ରିୟ ସଖି ବୃନ୍ଦ ଦେଖି ଘାକୂଳରେ
କଲେ ଉଚ୍ଚେ ହା ହା କାର ,
ସମସ୍ତଙ୍କ ବେନ— ନେତ୍ରୁ ଦୁଃଖ ଭରେ
ବହିଲା ଲୋତକ ଧାର ।
ଭାଗ୍ୟେ ପ୍ରାଣନାଥ ସେକାଳେ, ସେଠାରେ
ଥିଲେ ସହ ଉପସ୍ଥିତ ,
ଦେଖି ଏ ବିପଦ ନଦୀ-ଗରଭକୁ
ଲମ୍ଫ ଦେଲେ ସେ ତୁରିତ ।
ନଦୀ ଗର୍ଭୁଁ ମୋତେ କୂଳକୁ ଆଣିଲେ
ବହୁ କଷ୍ଟେ ପ୍ରାଣେଶ୍ୱର ,
ନାନା ଯତନରେ ସଚେତ କରଣ
ରଖିଲେ ପ୍ରାଣ ମୋହର ।
ଏଘଟଣା ସଖି ଅନୁଭୂତୋ ଦେଖି
ତହିଁ ଉପସ୍ଥିତ ଥାଇ ,
ରକ୍ଷିବ ଜୀବନ— କେସନେ, ଏସନ
ଅମୂଲ୍ୟନିଧି ହରାଇ ।”
ନନ୍ଦିନୀଙ୍କ ବୁଝି କହିବାକୁ ବୋଧି
ଶୁଣି ସଖି ବାମା-ବାଣୀ ,
ଚନ୍ଦ୍ରାର୍ପିତ ହାସ୍ୟ ହୋଇଣ ରହସ୍ୟ

ଉଚଳନ୍ତି ପାଦ, ପାଣି ।
ବନ୍ଦେ ହେମଲତା          ଘୃକୁଳ ବରଙ୍ଗେ
ସଙ୍ଗିନୀର ମୁଖ ଚାହିଁ ,
"ଏ ଦୁଃଖିନୀ ମୁଖ          ସହି ଅଉ କାଲି-
ଠାରୁତ ଦେଖିବୁ ନାହିଁ ।
କାହାର ସଙ୍ଗରେ          ଗାଧୋଇ ତୁ ଯିବୁ
ଉତରୁ କାହାର ବେଣ ,
ମନ କଥା ତୋର          ତା ଆଗେ କହିବୁ
ବାନ୍ଧି ଦେବୁ କାର କେଶ ।
କାହାପାଇଁ ସହି          ଉଦ୍ୟାନକୁ ଯାଇ
ନାନା ପୁଷ୍ପ ଦେବୁ ଆଣି ,
କାହା ସଙ୍ଗେ ହସି-          ଖେଳ ଦିନ ନେବୁ
ସେବିବୁ କା ମନ ଜାଣି ।
ଦଅ ପ୍ରିୟ ସଖି          ବିଦାୟ, ମାଗୁଛି
ମନରେ ପକାଉ ଥିବ ,
ଏଥର ଦୁଃଖିନୀ          ସଙ୍ଗିନୀ ଜନମେ
ମନେ ତାକୁ ନ ଭୁଲିବ ;
ମାତା, ପିତା ଆଗେ          କହିବ ମୋପାଇଁ
ଭାଳିବନାହିଁ ମନରେ ,
ଭୋଗିବଲୁ ତାହା          ଲେଖାଥିଲା ଯାହା

ସହ୍ୟ, ମୋହୋ କପାଳରେ ।"
ଏତେକହି ବାଳୀ    ଜଗତ-ଜୀବନ
ଉଦ୍ଦେଶ୍ୟେ କରୁ ପ୍ରଣାମ,
କହେ, ଦୟାମୟ    ହର; ପୂର୍ଣ୍ଣକର
ଦୁଃଖିନୀର ମନସ୍କାମ ।
ବଇକୁଣ୍ଠ ପୁରେ    ଭେଟିବ ପ୍ରାଣେଶ-
ଦଅ ମୋତେ ଏହିବର,
ଏତେ ଭଣି, ଅସି —    ଧରି, ବକ୍ଷେଭୂଷି
କାଢିନେଲା ସ୍ୱମାବର ।
ଶୋଣିତେ ପ୍ଲାବିତ    ହୋଇ ସୁରୂପାଙ୍ଗୀ
ପଡିଲା ମହୀ-କଣ୍ଠତ ।
ଜୀବନ ବିହଗ    ବେଗେ ଉଡିଗଲା
ଶରୀର ପିଞ୍ଜର ଛାଡି ।
ହାହାକାର ରବେ    କାନ୍ଦି ସହଚରୀ
ପ୍ରବେଶି ରତନପୁରେ,
ସକଳ, ବୃତ୍ତାନ୍ତ-    ନିବେଦିଲା, ହେମ-
ଲତା ମାତାଙ୍କ ଛାମୁରେ ।
ହେମଲତା ମାତା    ଶୁଣିଲେ କାନ୍ଦିଲେ
ଶିରେମାରି ବେନି କର,
"କେଣେ ଛାଡିଗଲୁ    ରଙ୍କୁଣୀ ରତନ

ଯନ୍ତ୍ରି ନୟନ ସ୍ଥାନର ।
ମୋଜୀବ-ଜୀବନ ନୟନ ପିତୁଳୀ
ଅରେ-ଗଲାରତ୍ନ-ମାଳୀ ,
ତୋତେ ହରାଇ ମୁଁ କେମନ୍ତେ ବଞ୍ଚିବ
ଅହା ମୋ ଦୁଃଖୀ ସଞ୍ଜାଳୀ ।"
ଏତେ କହି ପଡ଼ୁଁ ମୂର୍ଚ୍ଛିତେ ଭୂତଳେ
(ବାକ ପଣନ୍ତରେ ରହି;—
ସଖୀଏ ସତ୍ୱରେ କଲେ ଯତ୍ନେ ମୁଖେ
ଶୀତଳ-ସଲିଳ ସିଞ୍ଚି) ।
ହେମଲତା-ପିତା ଶୁଣିଣ ରହୁଲେ
ଛିଡ଼କ କର ଲପନ ,
ସମ୍ଭାଳ ନପାରି ଅକୁଳେ କାନ୍ଦଲେ
ଝରନ୍ତି ବେନି ନୟନ ।
ହାହାକାର ରବ . ଚୌଦଗେ ବ୍ୟାପିଲା
ଶୁଣି ଦାରୁଣ ସମ୍ବାଦ ,
ହମସ୍ତଙ୍କ ନେତ୍ରୁ ହେଲା ଅଶ୍ରୁପାତ
କଲେ ସର୍ବେ ବିଷାଦ ।
ଘଟଣା ସ୍ଥଳରେ ହେମଲତା ପିତା-
ପଦ୍ମଙ୍କେ ପ୍ରବେଶିଲେ ,
ବମ୍ଭାଧର୍ ହେମ- ଲତା ପର୍ଶ ନନ୍ଦ୍ରା

ଭଜ ଅଛନ୍ତି ଦେଖିଲେ ।
ଧିକ ଧିକ୍କାର କହନ୍ତି ସକଳେ
"ଧିକ୍ ଦାରୁଣ ଦଇବ ,
କେଉଁ ଅପରାଧୁଁ ଏ ଦଣ୍ଡ ବିଧିଲୁ
ଏହା କି ଦେହ ସହିବ ?
ଯୋନୁରୋ ଘଟଣା ଯୋଡ଼ୁ ତୋ କବେହ
ତେ ଦେଲ ତୋ ନାମ ବିଧି ,
ତବୁ ଛୁ ଘଟଣା ତୁ ଯେଣୁ ଜଗତେ
ସଦା ଏସନ ଅବଧି ।
ଧିକ ଧିକ ଅରେ ସର୍ବ ଗ୍ରାସୀ କାଳ
ଧିକ ତୋହର ଉଦର ,
ଦୁରନ୍ତ ! କି ଯଶଃ ଅର୍ଜିଲୁ ଲବଣି-
ପିଉଲା କରି ସଂହାର ।
ଏବେ ରାଜା ପ୍ରଜା ଧନୀ ଦରିଦ୍ରି ଜନୀ
ବୃଦ୍ଧ , ଶିଶୁ , ଯୁବାଜନ ,
ଉଦରେ ପୂରାଇ ତଥାପି ସନ୍ତୋଷ
ନୋହିଲା କିରେ ତୋ ମନ ?
ଲେଶମାତ୍ର ଦୟା ନାହିଁ କି ତୋ ହୃଦେ
ଗଢ଼ା କି ତାହା ପଥରେ ?
କହ କହ ଅରେ ଦୁରାଗ୍ରହୀ ଶମ୍ନ .

କପଟ କରନ୍ତି ଥରେ ।

ଗାନ୍ଧେ ଦୀନବନ୍ଧୁ ବାରଣ-ତାରଣ
କଂସ କୁଞ୍ଜର କେଶରୀ ,
ଦୁର୍ଦ୍ଦାନ୍ତ ଦମନ ପାଇଁ କରେ ଦେବ
ଅଛ ତୁମ୍ଭେ ଚକ୍ର ଧରି ।
ଗୋପପୁର ବାସୀ ରକ୍ଷା ଅର୍ଥେ କରେ
ଟେକିଥିଲ ଗୋବର୍ଦ୍ଧନ ,
କି ଦୋଷରୁ ଆଜି ଏକାଳେ କୃଷ୍ଣହେ
କରୁଅଛ ବନ୍ଧୁ ଛେଦନ ?
କମ୍ପ କାଳଠାରୁ ତୁମ୍ଭ ପଦ୍ମକ୍ରମ
ଅଟେ ପ୍ରଭୁ ସ୍ଥାବରର ,
କରଯୋଡ଼, ଗାନ୍ଧେ— ଜଣାଉଛୁଁ ହେଉ
ଶ୍ରୀମୁଖୁଁ ପ୍ରଭ ଉତ୍ତର " ।
ଏ ଅନ୍ତେ ସମାପ୍ତ— ରଚଣ କେବଳି
ଅଗ୍ନି ସମ୍ଭାର କରାଇ ,
ଦୁଃଖିତ ଅନ୍ତରେ ନିଜ ନିଜ ଗୃହେ
ପ୍ରବେଶ ହୋଇଲେ ଯାଇ ॥

ସମାପ୍ତ ।



## ବିଜ୍ଞାପନ ।

ଖଲ୍ଲିକୋଟ ଇଷ୍ଟେଟ ପ୍ରେସରେ ନିମ୍ନ ଲିଖିତ ପୁସ୍ତକ-ମାନ ବିକ୍ରୟାର୍ଥ ଜମା ଅଛି । ଡାକ ମାଶୁଲ ପୃଥକ୍ ।

ଶ୍ରୀ ନୀଳମଣି ବିଦ୍ୟାରତ୍ନ ପ୍ରେସମେନେଜର ରମ୍ଭା ।

| | | | |
|---|---|---|---|
| ଗୀତମନୋରମା | ଽ ୦ ୧ ୬ | ଇନ୍ଦ୍ରଜାଲ କୌତୁକ | ଽ ୦ ୧ ୯ |
| ପତ୍ରମଳ (ପଦ୍ୟ) | ଽ ୦ / | ଶ୍ଳୋକମୁକ୍ତାବଳୀ | ଽ ୦ / |
| ସ୍ତବରତ୍ନାକର | ଽ ୦ ୵ ୬ | ବିସୂଚିକାଚିକିତ୍ସା | ଽ ୦ / |
| ବାଳକପାଠ | ଽ ୦ ୷ | ନୀତିପରାଗ ୧ ମ | ଽ ୦ / |
| ଯଜ୍ଞୋପବୀତ ମନ୍ତ୍ର | ଽ ୦ ୧ ୯ | ନୀତିପରାଗ ୨ ୟ | ଽ ୦ / |
| ପାରିବାରିକ ଚିକିତ୍ସା | ଽ ୦ । | ସନ୍ଧ୍ୟା ପ୍ରଦୀପ | ଽ ୦ / ୬ |
| ଜ୍ୱରଚିକିତ୍ସା | ଽ ୦ ୷ | ସୁମିତ୍ରା (ପଦ୍ୟ) | ଽ ୦ ୧ ୯ |
| ତୁଳସୀସ୍ତବକ | ଽ ୦ / | ବସନ୍ତରୋଗଚିକିତ୍ସା | ଽ ୦ ୧ ୯ |
| ୧୧ ଶ ଭାଗବତ | ଽ ୦ ।୷ | ପ୍ରାତଃସ୍ମରଣ | ଽ ୦ / |
| ଉତ୍କଳମଧୁପ | ଽ ୦ / | ଭକ୍ତଜନରଞ୍ଜନୀ | ଽ ୦ / |
| ମନବୋଧ ୩୪ଶା | ଽ ୦ ୧ ୬ | ଦାର୍ଣ୍ଣ୍ୟତ ଭକ୍ତ— | ଽ ୧ |
| ପଦ୍ମାବତୀ (କାବ୍ୟ) | ଽ ୦ ୵ | ଗଣିତପ୍ରଶ୍ନ ସମାଧାନ | ଽ ୦ । |
| ପ୍ରାର୍ଥନା (ଗଣାଣ) | ଽ ୦ ୧ ୬ | ଦ୍ୱଉବଣ (ପଦ୍ୟ) | ଟ ୧ |
| ବର୍ଣ୍ଣବିବେକ | ଽ ୦ ୧ ୬ | ଛନ୍ଦରତ୍ନାକର | ଟ ୦ / |
| ପଣବଅମ୍ଳକା | ଽ ୦ / | ମାଳଭଲ୍ଲ ୩୪ଶା | ଟ ୦ ୧ ୬ |
| ଗୋ-ଚିକିତ୍ସା ୧ ମ | ଽ ୦ / | ନୀତିଦର୍ପଣ | ଟ ୦ / |
| ଗୋ-ଚିକିତ୍ସା ୨ ୟ | ଽ ୦ ୵ | ଗଞ୍ଜାମ ପତ୍ରିକା | ଽ ୦ ୵ |